# ଆପେ ଚଷ କୁଟୁମ୍ବ ପୋଷ




## ଶ୍ରୀଅକ୍ଷୟ କୁମାର ଘୋଷ

# ଆପେ ଚଷ କୁଟୁମ୍ବ ପୋଷ

**ଅକ୍ଷୟ କୁମାର ଘୋଷ** ଏମ. ଏ., ବି. ଇଡ଼.
ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷକ

**ବିଦ୍ୟା ପ୍ରକାଶନ**
ବାଲୁବଜାର
କଟକ-୭୫୩୦୦୨

# ଆପେ ଚଷ କୁଟୁମ୍ବ ପୋଷ

ଲେଖକ :

**ଅକ୍ଷୟ କୁମାର ଘୋଷ** ଏମ୍. ଏ., ଡି. ଇଡ୍.

ପ୍ରକାଶକ :

**ବିଦ୍ୟା ପ୍ରକାଶନ**

ବାଲୁବଜାର

କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ**

ଡଗରପଡ଼ା, କଟକ-୨

**ମୂଲ୍ୟ—ଟ ୪-୫୦**

# ସୂଚୀ ପତ୍ର





# ଆପେ ଚଷ କୁଟୁମ୍ବ ପୋଷ

ଜଗଦଶପୁର ଗୋଟିଏ ଗାଁ । ଏ ଗାଁଆଟି ବଡ଼ ନୁହେଁ କି ସାନ ନୁହେଁ, ଯାହାକୁ କହନ୍ତି ମଝଲା । ଏଇ ଗାଆଁ ପାଖରେ ଚାଷ ଜମି ଅଛି । ଗୋପାଳ ନାଏକ ଏହି ଗାଆଁର ଜଣେ ଚାଷୀ । ଗଦାଧର ଦାସଙ୍କ ଘର ଏହି ଗାଆଁରେ । ସେ ପ୍ରଚୁର ବନ୍ଦରରେ କାମ କରନ୍ତି । ସେ କଟକରେ ବରାବର ରହନ୍ତି । ବେଳେ ବେଳେ ଛୁଟି ନେଇ ଗାଆଁକୁ ଆସନ୍ତି ।

ତାଙ୍କର ଅନେକ ବହୁତେ ଚାଷ ଜମି ଅଛି । ତାଙ୍କର ଚାଷ କେମିତି ଚାଲିଛି ଆସି ଦେଖିଯାଆନ୍ତି । ଥରେ ଗାଆଁକୁ ଆସିଛନ୍ତି ଗୋପାଳ ନାଏକଙ୍କ ସହିତ ଭେଟ ହେଲା । ଗୋପାଳ ନାଏକ ତାଙ୍କର ପଡ଼ୋଶୀ । ଗୋପାଳ ପଚାରିଲା, ଗଦେଇ ବାବୁ କେବେ ଆସିଲେ ? ଗଦାଧର କହିଲେ, ଏଇତ ଆଜ ଆସିଲି । ଗାଆଁର ଖବର କଣ ?

ଗୋପାଳ କହିଲା ଖବର ଆଉ କଣ ? ସବୁ ଜିନିଷ ତ ମହଙ୍ଗା, ସୋରିଷ ତେଲ ଦର ତ ଆକାଶ ଛୁଆଁ ଦର । ଆମେ ଗରିବ ଲୋକ ଚଳିବୁ କେମିତି ? ଯେତେ ରୋଜଗାର

କଲେ ବ ସେଠକୁ ଅଣ୍ଟୁନ । ସେଠ ଘୃଖଣ୍ଡକ ପୁରାଇବା କାଠିକର ପାଠ ହେଲାଣି ।



ଗଦାଧର କହିଲେ, ହଁ ସୋରିଷ ତେଲର ଦର ବଢ଼ୁଛି ? ଖାଲି କଣ ସୋରିଷ ତେଲ ? ସୋରିଷ ତେଲ ଦର ବଢ଼ିବା ସଙ୍ଗେ ସଙ୍ଗେ ଅନ୍ୟ ତେଲର ଦର ବଢ଼ୁଛି । ଆମ ଦେଶରେ ସେତିକି ତେଲ ଉତ୍ପାଦନ ହେଉନି ।

ଗୋପାଳ ପଚାରିଲା, କାହିଁକି ତେଲ ଉତ୍ପାଦନ କଣ ହେଉନି ? ଆମ ଦେଶରେ ବହୁତ ଚାଷ ଜମି ଅଛି । ଗଦାଧର କହିଲେ, ଚାଷ ଜମି ଥିଲେ କଣ ହେବ ? ତୈଳବୀଜରୁ ତେଲ ଉତ୍ପାଦନ ହୁଏ । ତୈଳବୀଜ ଚାଷ ବେଶୀ ହେଉନି ?

କାହିଁକି ଆମ ଦେଶ ଚାଷୀ କଣ ତୈଳବୀଜ ଚାଷ କରୁ ନାହାନ୍ତି ?

ହଁ ଚାଷ କରୁଛନ୍ତି, ହେଲେ ଯେତେ ଚାହିଦା ସେତିକି ହେଉନି । ସରକାର ବିଦେଶରୁ ପାମୋଲିନ ତେଲ କିଣି ଦେଶର ଲୋକଙ୍କୁ ଯୋଗାଇ ଦେଉଛନ୍ତି । କୋଟି କୋଟି ଟଙ୍କା ଆମ ଦେଶରୁ ବିଦେଶକୁ ଚାଲିଯାଉଛି । ଏତିକି ଟଙ୍କା ଆମ ଦେଶରେ ରହିଲେ ଦେଶର ଉନ୍ନତି ହୁଅନ୍ତା । କାହିଁକି ଏମିତି ହେଉଛି ?

ଆମ ଦେଶ ଲୋକେ ନିଜକୁ ବିଶ୍ୱାସ କରୁନାହାନ୍ତି, ନିଜେ କଣ କରି ପାରିବେ ଜାଣିପାରୁ ନାହାନ୍ତି, ସେମାନଙ୍କର ବି ସାହାସ ନାହିଁ । ନିଜକୁ ଉପରକୁ ଉଠେଇବାକୁ ଚାହୁଁ ନାହାନ୍ତି । ନିଜେ କେମିତି ଭଲ ଗଣ୍ଡିଏ ଖାଇବେ, ଭଲ ଖଣ୍ଡେ ପିନ୍ଧିବେ, ଭଲ ଘରେ ରହିବେ ଏ ଚିନ୍ତା ସେମାନ-ଙ୍କର ନାହିଁ ।

ସେମାନେ ଅଳ୍ପକରେ ସନ୍ତୁଷ୍ଟ ହୋଇ ରହିଛନ୍ତି । ଏଥିପାଇଁ ସେମାନଙ୍କର ମନର ବଳ ଭାଙ୍ଗି ଯାଉଛି । ଜଣାଯାଉଛି ଯେମିତି ସେମାନେ ଅଫିମ ଗଞ୍ଜେଇ ଖାଇ ଶୋଇଯାଉଛନ୍ତି । ଜଣେ ଲେଖକ ଲେଖିଛନ୍ତି

ଏମାନେ ଡେଇଁ ଶୋଇଛନ୍ତି । ତେବେ ଏମାନଙ୍କୁ ଉଠେଇବ କିଏ ?

ପ୍ରଥମେ ଜନ ଚେତନା ଜାଗ୍ରତ କରିବାକୁ ପଡ଼ିବ । ଏହା କେବଳ ସମାଜସେବୀ ଓ ଶାସନଦଳର କର୍ମୀମାନେ କରିପାରିବେ । ଗାଆଁର ଶିକ୍ଷିତ ବେକାରୀ ଯୁବକମାନେ ବାହାରି ପଡ଼ିଲେ ଏ କାମ ହୋଇପାରିବ । ସେମାନେ ଚାକିରୀ ଖୋଜି ଖୋଜି ହାଲିଆ ହୋଇ ପଡ଼ୁଛନ୍ତି । ଚାକିରିନିଶା ଛାଡ଼ିଲେ ସବୁ ହୋଇ ପାରିବ ।

ଗୋପାଳ କହିଲା, ଗଦେଇ ବାବୁ ବହୁତ ବଡ଼ ବଡ଼ କଥା କହିଲେ । ଏସବୁ କଥା ଆମପରି ମଳମୁଣ୍ଡିଆ ମୁଣ୍ଡରେ ପଶୁନି । କ କ ତୈଳବୀଜ ଚାଷ କରିବାକୁ ପଡ଼ିବ କେମିତି ଚାଷ କରାଯିବ କୁହନ୍ତୁ । ମୋର କିଛି ଜମି ଅଛି । ମୁଁ ଚାଷ କରିବି । ମୋ ଚାଷ ଦେଖି ଅନ୍ୟମାନେ କରିବେ ।

ଗଦାଧର କହିଲେ, ତୈଳବୀଜ କହିଲେ, ଚିନାବାଦାମ ରାଶି, ସୋରିଷ, ସେଶି, ଜଡ଼ା, କପା, ନଡ଼ିଆ ଓ ସୋୟାବିନ୍ ତେଲକୁ ବୁଝାଏ । ଏସବୁ କେମିତି ଚାଷ କରିବାକୁ ହେବ କହୁଛି ଶୁଣ । ଏସବୁ କଥା ମନେ ରଖି ତୁମେ ଚାଷ କଲେ ତୁମ ଆଖପାଖ ସବୁ ଚାଷୀ ଚାଷ କରିବେ । ତୁମଠୁ ପରାମର୍ଶ ନେବେ ।

ଆମ ଭାରତ ବର୍ଷରେ ଯେତେ ଜମିରେ ତୈଳବୀଜ ଚାଷ ହୁଏ ସେଥିରୁ ପ୍ରାୟ ଅଧେ ଜମିରେ ଚିନାବାଦାମ ଚାଷ କରାଯାଏ । ଆମ ଓଡ଼ିଶାରେ ଅଣଷଠି ହଜାର ଏକର ଜମିରେ




ଲୋକେ ଚିନାବାଦାମ ଚାଷ କରନ୍ତି । ପୃଥିବୀରେ ଅନ୍ୟାନ୍ୟ ଦେଶ ସହିତ ତୁଳନା କଲେ ଆମେ ଦେଖିବା, ଆମ ଭାରତରେ ସବୁଠୁ ବେଶୀ ଚିନାବାଦାମ ଚାଷ ହୋଇଥାଏ । ଉତ୍ପାଦନ ବି ଅଧିକ ।

ମୋଟ ଉତ୍ପାଦନ ସିନା ଅଧିକ । ମାତ୍ର ଏକର ପ୍ରତି ଆମଦାନୀ ଅତି କମ୍ । ଚୀନ ଦେଶର ଚାଷୀମାନେ ଏକ ଏକରରୁ ସାତଶହ ତିରିଶି କିଲୋଗ୍ରାମ ଚିନାବାଦାମ ଆମଦାନୀ କରନ୍ତି କିନ୍ତୁ ଆମ ଭାରତର ଚାଷୀ ଆମଦାନୀ କରନ୍ତି କିନ୍ତୁ ଏକ ଏକରରୁ ତିନିଶହ କିଲୋଗ୍ରାମ । ଅଧାରୁ କମ୍ । ମାତ୍ର ଭାରତ ଚିନାବାଦାମ ଉତ୍ପାଦନରେ ପୃଥିବୀରେ ପ୍ରଥମ ।

ଆମ ଦେଶରେ କୃଷି ଗବେଷଣା କେନ୍ଦ୍ର ଅଛି । ସେଠାରେ ପରୀକ୍ଷା ଚାଲେ । ପରୀକ୍ଷାରୁ ଜଣାଯାଏ ଯେ ଆମ ଦେଶରେ ଚାଷୀ ଏକର ପ୍ରତି ଯେତେ ସାର ଦେବାର କଥା ଯେ




ବୁଦାଳିଆ ବା ଝଙ୍କାଳିଆ ଚିନାବାଦାମ । ଏହା ସାଧାରଣତଃ ଭାରତରେ ଚାଷ କରାଯାଏ ।

ସେତେ ପରମାଣରେ ସାର ଦଏନା । ସେଥିପାଇଁ ଗୋଟେ ଏକରରୁ ଏତେ କମ୍ ଚିନାବାଦାମ ଆମଦାନୀ ହୁଏ ।

# ଚିନାବାଦାମ ଚାଷ

ଆମ ରାଜ୍ୟରେ ସମସ୍ତ ତୈଳବୀଜ ଜାତୀୟ ଫସଲ ଗୁଡ଼ିକର ସର୍ବମୋଟ ଅମଳର ପ୍ରାୟ ଶତକଡ଼ା ପଚାଶ ଭାଗରୁ ଅଧିକ କେବଳ ଚିନାବାଦାମ ଫସଲରୁ ମିଳିଥାଏ । ବିଭିନ୍ନ ତୈଳବୀଜ ଫସଲ ମଧ୍ୟରେ ଚିନାବାଦାମ ମୁଖ୍ୟ ଫସଲ ଅଟେ ।

ତୈଳବୀଜ ଉତ୍ପାଦନ ବଢ଼େଇବାକୁ ହେଲେ, ଚିନା-ବାଦାମ ଉତ୍ପାଦନ ବଢ଼େଇବା ନିହାତି ଦରକାର । ଆମ ରାଜ୍ୟରେ ଏହା ଖରିଫ, ରବି ଓ ଖରା ଦିନରେ ଚାଷ କରାଯାଏ ।

ବୈଜ୍ଞାନିକମାନେ ଚିନାବାଦାମକୁ ତିନୋଟି ବିଭାଗରେ ବାଣ୍ଟିଛନ୍ତି । (୧) ଗୁଚ୍ଛ ଜାତୀୟ (୨) ମଧ୍ୟମ ଲୋଟଣୀ ଜାତୀୟ (୩) ଲୋଟଣୀ ଜାତୀୟ ।

ଲୋଟଣୀ—ଏହା ବର୍ଷା ଋତୁରେ ଚାଷ କରାଯାଏ ! ଏହା ମାଟି ଉପରେ ଲଟିଯାଏ । କାଣ୍ଡର ପ୍ରତି ଗଣ୍ଠିରୁ ଚିନାବାଦାମ

ଫଳେ । ଏହାର ମଞ୍ଜି ଅଣ୍ଡାକାର । ମଞ୍ଜିର ଚୋପା ପିଙ୍ଗଳ ବା ଖଇରା । ଏହା ବିଳମ୍ବରେ ପାକଳ ହୁଏ କିନ୍ତୁ ଅଧିକ ଆମଦାନୀ ଦିଏ ।




ଗୋପାଳ କହିଲା, କେମିତି ମାଟିରେ ଚିନାବାଦାମ ଚାଷ ହୁଏ ସେ ବିଷୟରେ ତ କିଛି କହିଲେ ନାହିଁ । ଗଦାଧର ବାବୁ କହିଲେ, ଆଚ୍ଛା ତେବେ କହୁଛି ।

ଜମି—ଚିନାବାଦାମ ମାଟି ମଧ୍ୟରେ ଫଳିଥାଏ । ସେଥିପାଇଁ ମାଟି ଯେତେ ହାଲୁକା ଓ ଫସ୍‌ଫସିଆ ହେବ ସେତେ ଭଲ । ଅମ୍ଳ ମାଟିରେ ଚିନାବାଦାମ ଫସଲ

ହୋଇଯାଏ । ତେଣୁ ଏହା ପାଇଁ ଦୋରସା, ବାଲିଆ, କଳାମାଟି ବା ତେଲିଆ କନ୍ଦାଳ ମାଟି ଦରକାର ।

ଫସଲ ଲଗାଇବା ସମୟ—ଖରିଫ ଫସଲ ଲାଗି ଜୁନ୍ ମାସ ଏବଂ ରବି ଫସଲ ଲାଗି ପୌଷ ଓ ମାଘ ମାସ ଭଲ ସମୟ । ମାଟି ଓଦା ଥିବାବେଳେ ମଞ୍ଜି ବୁଣାଯାଏ । ଚିନା-ବାଦାମ ଖୋଳପା ଛଡ଼ା ଯାଇ ମଞ୍ଜି ଲଗାଯାଏ । କେହି କେହି ଖୋଳପା ଛଡ଼ାଇ ଗୋବର ବାଟଲାରେ ବୁଡ଼ାଇ ବୁଣନ୍ତି । ମଞ୍ଜି ବୁଣିବା ପୂର୍ବରୁ ଆଗ୍ରୋସାନ୍ ଗୁଣ୍ଡରେ ଫେଣ୍ଟି ଦେବା ଭଲ । ଲୋଟଣୀ ଜାତୀୟ ବହଳକୁ ଧାଡ଼ିକୁ ଧାଡ଼ି ତିରିଶ ସେ. ମି ଓ ଗଛକୁ ଗଛ କୋଡ଼ିଏ ସେ. ମି. ଦୂରରେ ଲଗାଇବା ଉଚିତ ।



ଖତ ଓ ସାର—ଜମିକୁ ହଳ କରିବା ବେଳେ ଏକର ପ୍ରତି ପାଞ୍ଚ ଗାଡ଼ି ଗୋବର ଖତ ବା କମ୍ପୋଷ୍ଟ ବାଞ୍ଛିବାକୁ

ପଡ଼େ । ପାଣି ମଡ଼ା ହେଉଥିବା ଜମିରେ ଦଶଗାଡ଼ି ଗୋବର ଖତ ବା କମ୍ପୋଷ୍ଟ ଦିଆଯାଏ ।

କିନ୍ତୁ ଆମ ଦେଶର ଚାଷୀମାନେ ଗୋବରର ମୂଲ୍ୟ ବୁଝନ୍ତି ନାହିଁ । ସେମାନେ ଗୋବରକୁ ଘସି କରି ଜାଳି ଦିଅନ୍ତି । ଗଛ ଉଠିବାର କୋଡ଼ିଏ ଦିନ ପରେ ଜମି ଖୁସାଇ ଗଛ ଧାଡ଼ିର ଉଭୟ ପାଖରେ ଏକର ପ୍ରତି କୋଡ଼ିଏ କିଲୋଗ୍ରାମ ହିସାବରେ




କେଲସିୟମ ଏମୋନିୟମ୍ ନାଇଟ୍ରେଟ ଦେବା ଭଲ । ମାତ୍ର ପାଣି ମଡ଼ା ହେଉଥିବା ଜମିରେ ପଇଁତିରିଶ କିଲୋଗ୍ରାମ ଦିଆଯିବା ଭଲ ?

ପ୍ରଥମ ଅବସ୍ଥାରେ ଭଲ ଭାବରେ ବଢ଼ିବା ପାଇଁ କିଛି ଯବକ୍ଷାରଜାନ ସାର ଦେବା ଭଲ । ଯବକ୍ଷାରଯାନ ଚିନାବାଦାମ ଗଛର ଡାଳପତ୍ରକୁ ବଢ଼ାଏ । ଫସଫରସ୍ ଫୁଲ ଧରିବାରେ ସାହାଯ୍ୟ କରେ ।

ବଛା ସମୟ — ଚିନାବାଦାମ ଗଛର ଛଅ ଦିନ ମଧ୍ୟରେ ଉପରକୁ ଉଠିଆସେ । ସାଧାରଣତଃ ଦୁବ, ଲୁନିକୁଳି, ଘୁଆଁ, ଅପମାରଙ୍ଗ, ଲହଙ୍ଗା, ଲଙ୍କାମରିଚ ପ୍ରଭୃତି ଅନାବନା ଗଛ ଚିନାବାଦାମ କ୍ଷେତରେ ଦେଖାଯାଏ । ଫସଲକୁ ଏହି ଅନାବନା ଘାସଲଟା ପ୍ରଭୃତିରୁ ନିଶ୍ଚିତ ଭାବେ ପ୍ରଥମ ପଇଁଚାଳିଶ ଦିନ ମୁକ୍ତ ରଖିବାକୁ ପଡ଼େ । ଏହି ସମୟ ମଧ୍ୟରେ ଦୁଇଥର ଖୁସାଇ ଘାସ ବାଛି ଦିଅନ୍ତୁ ।

ପାଣିମଡ଼ା ସମୟ — ରବି ଚିନାବାଦାମ ସାତରୁ ଆଠଦିନ ଅନ୍ତରରେ ପାଣି ଖୋଜେ ।

ଫୁଲ ଓ ଫଳ ସମୟ — ଚିନାବାଦାମ ଲଗାଯିବାର ତିନି ସପ୍ତାହ ପରେ ଫୁଲ ଆସେ । ବୁଦା ଜାତୀୟ ଚିନାବାଦାମ ଗଛରୁ ପାଞ୍ଚ ସପ୍ତାହ ମଧ୍ୟରେ ଫୁଲ ଆସେ । ଲୋଟଣୀ

ଚିନାବାଦାମ ପାଞ୍ଚରୁ ସାତ ସପ୍ତାହ ମଧ୍ୟରେ ଫୁଲରେ ଲଦି ହୋଇ ରହେ ।




ପରାଗ ସଙ୍ଗମ ପରେ ଗର୍ଭାଧାରର ନାଡ଼ ମାଟି ଭିତରେ ପଶେ । ଏହି ନାଡ଼ଗୁଡ଼ିକ ବର୍ଦ୍ଧିତ ହୋଇ ଚିନାବାଦାମରେ ପରିଣତ ହୁଏ ।

ଚିନାବାଦାମ ଖୋଳା – ବୁଦା ଚିନାବାଦାମ ଶହେ ପାଞ୍ଚରୁ ଶହେ ପନ୍ଦର ଦିନ ମଧ୍ୟରେ ଓ ଲୋଟଣୀ ଚିନାବାଦାମ ଶହେ ପଇଁତିରିଶରୁ ଶହେ ପଇଁଚାଳିଶ ଦିନରେ ଖୋଳା-ଯାଏ । ଗଛ ହଳଦିଆ ପଡ଼ି ସୁଖିବାକୁ ଆରମ୍ଭ କଲେ ଫସଲ ଅମଳ ଉପଯୋଗୀ ହେଲା ବୋଲି ଜଣାଯାଏ ।

ଏହି ସମୟରେ ମଞ୍ଜିରେ ଚୋପା ପାଟଳ ରଙ୍ଗ ଦେଖାଯାଏ । ଚୋପାର ଭିତର ପଟେ କଳା ଦେଖାଯାଏ । ମାଟିରେ ବତର ଥିବା ଅବସ୍ଥାରେ ଅମଳ କରାଯାଏ । ବତର ନଥିଲେ ପାଣି ମଡ଼ାଯାଇ ଅମଳ କରାଯାଏ । ଚିନାବାଦାମରୁ ମାଟି ଛଡ଼ାଇ ଭଲ ଭାବରେ ସଫା କରି ଶୁଖାଇ ସାଇତି ରଖାଯାଏ । ଟାଣ ଖରାରେ ନ ଶୁଖାଇ ଚିନାବାଦାମକୁ ଛାଇରେ ଶୁଖାଇବା ଉଚିତ ।

ଆମଦାନି—ଆମେ ଯେବେ ଏକର ପ୍ରତି ସାତଶହ ସତୁରି କିଲୋଗ୍ରାମ ଆମଦାନି କରିବାକୁ ଚାହୁଁବା ତେବେ ଭଲ ଚିନାବାଦାମ ଫସଲ ପାଇଁ ହାରାହାରି ୩୦. ୭ କି. ଗ୍ରା. ଯବକ୍ଷାରଜାନ, ନଅ କି. ଗ୍ରା. ଫସ୍‌ଫରିକ୍ ଅମ୍ଳ ଓ ଅଠର କି ଗ୍ରା. ପୋଟାସ ଦେବା ଉଚିତ ।

ଗୋପାଳ ପଚାରିଲା ଗଛରେ ପୋକ ଲାଗିଲେ କ'ଣ କରାଯିବ ?

ଗଦାଧର କହିଲେ, ଚିନାବାଦାମ ଗଛରେ କାଣ୍ଡକଟା, ପତ୍ରଖିଆ, ବିରିଲି ଆଦି ପୋକ ଗଛକୁ କାମୁଡ଼ି ଖାଆନ୍ତି । ଶୋଷି ଖାଉଥିବା ପୋକମାନଙ୍କୁ ମାରିବା ଲାଗି ମେଟାସିଷ୍ଟିକସ୍ ଓ ଡେମିକ୍ରନ ପ୍ରଭୃତି ଗଛ ଭିତରକୁ ବିଷାକ୍ତ କରୁଥିବା ଔଷଧ ବ୍ୟବହାର କରାଯାଏ ।

ଗଛେବେଇ ଖାଉଥିବା ପୋକକୁ ମାରିବା ପାଇଁ, ସୁମିଥିଆନ , ନୁ୍ୟଭାନ, ସେଭିନ୍ ପ୍ରଭୃତି ଔଷଧ ବ୍ୟବହୃତ ହୁଏ । ଏହା ନ କରି ଦୁଇପ୍ରକାର ପୋକ ମାରିବା ପାଇଁ ଗୋଟିଏ ପ୍ରକାର ଔଷଧ ଦେଲେ କମ୍ପା ଏପରୀତ ଔଷଧ ନେଲେ ଭଲ ଫଳ ମିଳିବନି ।

ଔଷଧକୁ ଛିଞ୍ଚାଯନ୍ତ୍ର, ସ୍ପ୍ରେୟରରେ ପକାଇ ପମ୍ପକରି ଦେଇ ସ୍ପ୍ରେ କରନ୍ତୁ । ସ୍ପ୍ରେୟାର ଭିତରେ ଥିବା ପାଣି ସହିତ



ଔଷଧ ନ ମିଶିଲେ, ବା ପାଣି ଗୋଟିଏ ପାଖରେ ଔଷଧ ଗୋଟିଏ ପାଖରେ ସ୍ପ୍ରେ ହୁଏ । ପୋକ ମରେ ନାହିଁ କି ରୋଗ

ଛାଡ଼େ ନାହିଁ । ଦୋଷ ହୁଏ ଔଷଧ ବର୍ଣ୍ଣୀ ବାଲ୍‌ଟିର ବା ଔଷଧ ବଛେଇବା ବାଲ୍‌ଟିର ।

ପ୍ରଥମେ ଔଷଧକୁ ଅଲଗା ପାତ୍ରରେ ଭଲ ଭାବରେ ଗୋଳେଇ ଗୋଟିଏ ପମ୍ପ ମେସିନରେ ଥରକେ କେତେ ଠିପ ଔଷଧ ଦେବା ଦରକାର ଏକଥା ଜାଣିବା ଦରକାର ।

ଗୋପାଳ କହିଲା, ପୋକମରା ସରିଲେ ତ ଚନାବାଦାମ ଗଛର ଆଉ କୌଣସି ବିପଦ ନାହିଁ ?

ଗଦାଧର କହିଲେ, ନାହିଁ ବୋଲି କିଏ କହିବ ? ମୂଷା ଗୋଟିଏ ପ୍ରଧାନ ବିପଦ । ମୂଷା ଏକର ପିଛା ହାରାହାରି ୨୦. ୧ କେ.ଜି. ଚନାବାଦାମ ନଷ୍ଟ କରିଦିଏ । ବିଲରେ ମଞ୍ଜି ଲଗାହେବା ଦିନଠାରୁ ଅମଳ ପର୍ଯ୍ୟନ୍ତ ଫସଲର ଯଥେଷ୍ଟ କ୍ଷତି କରେ ମୂଷା ।

ଆମ ଲୋକଙ୍କର ଗୋଟେ ଅନ୍ଧବିଶ୍ୱାସ ଅଛି । ମୂଷା ଗଣେଶଙ୍କ ବାହାନ । ମୂଷାକୁ ମାରିଲେ ପାପ ହେବ । ସାପତ ଶିବଙ୍କ ମସ୍ତକରେ ପୂଜାପାଏ । ସେ ଅନିଷ୍ଟ କରୁଛି ବୋଲି ତାକୁ ଆମେ ମାରୁଛେ । ସେଇପରି ମୂଷା ଆମର ବହୁତ କ୍ଷତି କରେ । ଗଣେଶଙ୍କ ବାହାନ ବୋଲି ତାକୁ ନ ମାରିବା କାହିଁକି ?

'ଶତ୍ରୁ ପ୍ରତି ଦୁର୍ବଳତା ଦେଖାଇବା ମହାପାପ ।' ଏ ବିଷୟରେ 'ଗୀତା'ରେ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ ଥରକୁ ଥର ବୁଝାଇଛନ୍ତି ।




ଆମେ ଏତେ କଷ୍ଟରେ ଫସଲ ଅମଳ କରୁଛୁ । ଅଥଚ ମୂଷା ତାକୁ ନଷ୍ଟ କରୁଛି । ସେ ଆମର ପରମ ଶତ୍ରୁ । ତେବେ ମୂଷା ପ୍ରତି ଆମେ କାହିଁକି ଦୁର୍ବଳତା ଦେଖାଇବା ?

ମୂଷାମରା ବିଷ ତିନି ପ୍ରକାର । ଜିଙ୍କଫସ୍‌ଫାଇଡ଼୍ ଶୀଘ୍ର କାମଦିଏ । ଏ ବିଷ ଖାଇ ପାଣି ପିଇଲେ ମାତ୍ରେ ମୂଷା ମରିବ । ଏ ବିଷ ଖାଇ ମୂଷା ଖୁବ୍ ଶୀଘ୍ର ମରୁଥିବାରୁ ଅନ୍ୟ ମୂଷା

ଚତୁର ହୋଇ ଏ ବିଷକୁ ଖାଆନ୍ତିନା । ଏ ଔଷଧ ଦ୍ୱାରା ମୂଷାମରା ଯୋଜନା କାମ ଦଉନି ।

ଦ୍ୱିତୀୟ ପ୍ରକାର ଔଷଧ ହେଉଛି ମୂଷାର ରକ୍ତକୁ ପାଣି କରି ଦେଇ ମାରିଦିଏ । ଏ ଔଷଧ ଖାଇବାରୁ ଚାରି ପାଞ୍ଚ ଦିନ ପରେ ମୂଷା ମରେ । ଏ ଔଷଧ ପାଣି ବା ଖାଦ୍ୟ ଖାଇ ଚାରି ପାଞ୍ଚଦିନ ପରେ ମୂଷା ମରିବା ଦ୍ୱାରା ସେ କେଉଁଠି କଣ ଖାଇ ମରିଛି ବୋଲି ଜାଣି ପାରେନା । ଏ ଔଷଧ କମ୍ ବିଷାକ୍ତ ।

ଏ ଔଷଧ ପ୍ରତି ଆଜକାଲି ବିଶେଷ ଜୋର ଦିଆଯାଉଛି । ଏ ଔଷଧ ଖାଇ ଗୋଟିଏ ରାତି ଭିତରେ ମୂଷା ମରୁ ନ ଥିବାରୁ କିମ୍ବା ମୂଷା ମରିବାଟା ଆଖିରେ ଦେଖି ପାରୁ ନ ଥିବାରୁ ଏ ପ୍ରକାର ଔଷଧ ପ୍ରତି ଚାଷୀଙ୍କର ଆଗ୍ରହ କମ୍ ।

ତୃତୀୟ ପ୍ରକାର ଔଷଧ ହେଲା ଫ୍ୟୁମିନ୍ । ଏଇ ଔଷଧ ଜଳୀୟ ଅଂଶ ସମ୍ପର୍କରେ ଆସିଲେ ଗ୍ୟାସ ସୃଷ୍ଟି କରେ । ଏଇ ଗ୍ୟାସ ସଂସ୍ପର୍ଶରେ ଆସି ମୂଷା ମରେ । ଏଇ ଔଷଧ ବିଲରେ ଥିବା ଗାତରେ ଦେଲେ ମୂଷା ମରନ୍ତି । ଆଲୁମିନିୟମ୍ ଫସ୍‌ଫରସ ଆଦି ଏଇ ଜାତିର ଔଷଧ ।

ଆଗେ ବିଲରେ ବୁଲି ମୂଷାଗାତ ଖୋଜି ବାହାର କରିବାକୁ ପଡ଼େ । ପ୍ରତି ମୂଷାଗାତ ପାଖରେ ଗୋଟିଏ କାଳାପୋତି ଦିଆଯାଏ । ବା ଅନ୍ୟ କୌଣସି ଚିହ୍ନ ରଖାଯାଏ । ଗାତ ମୁହଁ ବନ୍ଦ କରାଯାଏ । ତହିଁଆରଦିନ ମୂଷା ଗାତ ମୁହଁକୁ ଖୋଲିଛି କି ନାହିଁ ଦେଖିବାକୁ ହୁଏ । ଗାତ ମୁହଁ ଖୋଲିଥିଲେ ମୂଷା ଗାତରେ ରହୁଥିବାର ଜଣାଯାଏ ।



ପ୍ରତି ଖୋଲା ଗାତରେ ଦୁଇଟି ଆଲୁମିନିୟମ୍ ଫସ୍‌ଫାଇଡ଼୍ ବଟିକା ଦେବାକୁ ହେବ । ଗାତ ମୁହଁ ଗୋଟିଏ ଛୋଟ ଇଟା ଦେଇ କାଦୁଅ ଲେସି ବନ୍ଦ କରିବ ।

ତହିଁ ଆରଦିନ ଯେବେ ଗାତ ଖୋଲାଥିବାର ଦେଖିବ ତେବେ ଜାଣିବ ମୂଷା ମରିନି । ତେଣୁ ଆଉ ଥରେ ଦୁଇଟି ଆଲୁମିନିୟମ୍ ଫସ୍‌ଫାଇଡ଼୍ ବଟିକା ଗାତରେ ଥୋଇ ଗାତ ମୁହଁକୁ ଭଲଭାବରେ ବନ୍ଦ କରିବ ।

ଚିନାବାଦାମ ଚାଷରୁ ତେଲ ପ୍ରସ୍ତୁତ କରାଯାଏ । ଏହି ତେଲ ବନସ୍ପତି ଘିଅର ପ୍ରଧାନ ଉପାଦାନ । ଚିନାବାଦାମକୁ ଭାଜି ଲୋକମାନେ ଖାଆନ୍ତି । ତେଲରେ ଗୁଡ଼ିଆମାନେ ମିଠେଇ ଓ ଛଣା ଖାଦ୍ୟ ଦ୍ରବ୍ୟ ତିଆରି କରନ୍ତି ।




ଡାଲ୍‌ଡା
(ବନସ୍ପତି)



ଘିଅ
(ଦୁଧରୁ ଲହୁଣି ତେଲ)

(ନଡ଼ିଆ, ଚିନାବାଦାମ କମ୍ବା ରାଶିତେଲରୁ ପ୍ରସ୍ତୁତ ବନସ୍ପତି)

ଚିତ୍ର —ଘିଅ ଏବଂ ନଡ଼ିଆ, ଚିନାବାଦାମ ଓ ରାଶିତେଲରୁ

ଗୋପାଳ କହିଲା ଗଦେଇ ବାବୁ ଚିନାବାଦାମ ଚାଷ ବିଷୟରେ ବହୁତ କଥା ଜାଣିଲି । ଏଥର ରାଶି ଚାଷ ସମ୍ବନ୍ଧରେ କିଛି କହନ୍ତୁ । ଗଦାଧର କହିଲେ ରାଶି ଚାଷ ସମ୍ବନ୍ଧରେ କହିବି । ତୈଳବୀଜ ସମ୍ବନ୍ଧରେ ସବୁ ଶୁଣିଲା ପରେ ତୁମ ଜମିରେ ଯେଉଁ ତୈଳବୀଜ ଚାଷ କରିବାକୁ ସୁବିଧା ମନେ କରିବ ମତେ କହିବ । ମୁଁ ସେ ଚାଷ ବିଷୟରେ ତମକୁ ଭଲ ଭାବରେ ବୁଝେଇ ଦେବି ।

# ରାଶି ଚାଷ

ଆମ ରାଜ୍ୟରେ ଚାଷ କରାଯାଉଥିବା ତୈଳବୀଜ ମଧ୍ୟରେ ରାଶିର ସ୍ଥାନ ସବୁଠୁ ଉପରେ । ଓଡ଼ିଶାରେ ମୋଟ ଚାରି ଶହ ଏକାବନ ହଜାର ଜମିରେ ତୈଳବୀଜ ଚାଷ ହୁଏ । ସେଥିମଧ୍ୟରୁ ଦୁଇଶହ ବାଇଶ ହଜାର ଏକର ଜମିରେ ରାଶି ଚାଷ କରାଯାଏ । ହେଲେ ଏକର ପ୍ରତି ଆମଦାନୀ କମ୍ ।

ଆମ ରାଜ୍ୟର ଚାଷୀ ରାଶି ପାଇଁ ପ୍ରାୟ ସାର ଦିଏ କି ନା ସନ୍ଦେହ । ରାଶି ଶୀତ ଦିନଆ ଓ ବର୍ଷା ଦିନଆ ଫସଲ । ଧାନ ଚାଷ ଶେଷ ହେଲା ପରେ ଚାଷୀ ରାଶିଚାଷ କରେ । ଧାନ ସାର ଦେଇଥିବା ପରେ ଯେଉଁ ସାର ମାଟିରେ ଥାଏ ରାଶି ସେଇ ସାରଟିକ ପାଏ । ସେଥିପାଇଁ ରାଶି ଉତ୍ପାଦନ ବେଶୀ ହୁଏ ନା ।

ଭଲ ଉତ୍ପାଦନ ପାଇବାକୁ ହେଲେ ନିୟମିତ ଭାବରେ ସାର ଦେବାକୁ ପଡ଼ିବ । ଠେଙ୍ଗ ଜମିରେ ରାଶି ବର୍ଷାଦିନଆ

ଫସଲ ହିସାବରେ ବୁଣାଯାଏ । ହେମିତ ଜମିରେ ସାର ନ ଦେଲେ ଆମଦାନୀ କମିଯାଏ । ଖାଲି ଯେ ଆମଦାନୀ କମେ ତାହା ନୁହେଁ ସେ ଜମି ଅନୁର୍ବର ହୁଏ ।




ଅଧିକାଂଶ ସ୍ଥଳରେ ଦେଖାଯାଏ କୃଷୀ ରାଶି କୃଷ ଆଡ଼କୁ ବିଶେଷ ନଜର ରଖେନି । ସେ ନୀରସ ଠେଙ୍ଗ ଜମିରେ ରାଶି ବୁଣେ । ମାତ୍ର ସେ ପ୍ରକାର ଜମିରେ ରାସାୟନିକ ଓ ଜୈବିକ ସାର ଦେବା ନିତାନ୍ତ ଦରକାର । ତାହା ନ କଲେ ଭଲ ଫସଲ ମିଳିବନି ।

ଗୋପାଳ ପଗ୍ଚରିଲା କୈବିକ ସାର କଣ ? ଏ ସାର ଦେବା ଯୋଗୁଁ କଣ ହୁଏ ? ଗଦାଧର କହିଲେ କୈବିକ ସାର ଓ ତାର ଗୁଣ କଣ ମନ ଦେଇ ଶୁଣ ।

ମାଟିରୁ ଫସଲ ଉତ୍ପନ୍ନ ହୁଏ । ଏହି ଫସଲର ବିଭିନ୍ନ ଅଂଶ ମଣିଷ ଗୃହପାଳିତ ପଶୁ ଖାଆନ୍ତି । ଗୋବରଖତ, ହାଡ଼ଗୁଣ୍ଡ, ଶବ ମାଂସ, ମାଛ ସାର ଓ ରକ୍ତ ସାରକୁ କୈବିକ ସାର କହନ୍ତି । ଏସବୁ ମାଟିରୁ ଆସି ପୁଣି ମାଟିରେ ମିଶେ ।

ମୁଁ ଆଜ ଟିକିଏ ସହଜ କରି ବୁଝେଇ ଦେଉଛି । ସୋରିଷ ଗଛ ମାଟିରୁ ଉତ୍ପନ ହେଲା । ଏହାର ମଞ୍ଜିରୁ ଆମେ ତେଲ ବାହାର କଲେ ଓ ପିଡ଼ିଆକୁ ଆମେ ଗଛ ମୂଳରେ ଦେଲେ । ଏଇ ପିଡ଼ିଆ ହେଲା କୈବିକ ସାର । ହାଡ଼ଗୁଣ୍ଡ ବି କୈବିକ ସାର ।

କୈବିକ ସାର ଦୁଇ ପ୍ରକାର (୧) ପ୍ରାଣୀଜ, ପ୍ରାଣୀ ଦେହରୁ ମିଳେ (୨) ଉଦ୍ଭିଜ, ଗଛରୁ ମିଳେ । କୈବିକ ସାର ମାଟିକୁ ଭଲ ଭାବରେ ଗଢ଼େ । ମାଟିର ଜଳଧାରଣ ଶକ୍ତି ବଢ଼ାଏ । ଭଲ ଭାବରେ ପଚି ନ ଥିବା କୈବିକ ପଦାର୍ଥ ମାଟିରେ ଥିବା ଉପକାରୀ ଜୀବ ଓ ଜୀବାଣୁମାନଙ୍କୁ ଖାଦ୍ୟ ଯୋଗାଏ ।

ଜୈବିକ ପଦାର୍ଥ ମାଟିର ଉତ୍ତାପ ବଢ଼ାଏ ନା କମାଏ ନା । ତେଣୁ ମାଟି ଗରମ ବା ଥଣ୍ଡା ହୁଏନି । ମାଟି ସାଧାରଣ ଅବସ୍ଥାରେ ରହେ । ଏହା ମାଟିର ଅଣୁଗୁଡ଼ିକୁ ମଧ୍ୟ ଭଲ ଭାବରେ ବାନ୍ଧି ରଖେ । ତେଣୁ ମୃତ୍ତିକା କ୍ଷୟ ହୁଏନି ।

ଖସାକୁ ତିଳ କୁହାଯାଏ । ଖସାଗଛ ହାତରୁ ତିନି ହାତ ଉଚ୍ଚ ବଢ଼େ । ଗଛରେ ତିନି ଚାରୋଟି ଶାଖା ଥାଏ । ଫୁଲ



ପାଟଳ ମିଶା ଧଳା । ଏହାର ଫୁଲ ଏତେ ସୁନ୍ଦର ଯେ ଆନ୍ଧ୍ର ସାହିତ୍ୟରେ ସ୍ତ୍ରୀମାନଙ୍କର ନାଶା ସହିତ ତୁଳନା କରାଯାଏ । ଗୋଟିଏ ଗଛରେ କୋଡ଼ିଏଟା ପର୍ଯ୍ୟନ୍ତ ଫଳ ଧରେ ।

ପ୍ରକାର—ଗୃଷ ଦୃଷ୍ଟିରୁ ତନି କାତର ଖସା ରହିଛି । ଯଥା : ଭୋଦେଇ—ଜ୍ୟେଷ୍ଠ ମାସରେ ବୁଣାଯାଏ, ଭାଦ୍ରବ ମାସରେ କଟାଯାଏ ।

୨ · ମାଘୀ—ସେପ୍ଟେମ୍ବର, ଅକ୍ଟୋବର ବା ଆଶ୍ୱିନ, କାର୍ତ୍ତିକ ମାସରେ ବୁଣାଯାଏ । ମାଘ ମାସରେ କଟାଯାଏ ।

୩ · ନଲଜ ବା ଖରିଫିଆ—ଫେବ୍ରୁୟାରୀ, ମାର୍ଚ୍ଚ ବା ଫାଲଗୁନ ମାସରେ ବୁଣାଯାଏ । ଜ୍ୟେଷ୍ଠ ମାସରେ କଟାଯାଏ ।

ଜମି · ଓଡ଼ିଶାରେ ପଦର, ଆଟ, ଖାଲ ଜମିରେ ଖସା ଗୃଷ କରାଯାଏ । ନଗିଡ଼ା ବଲୁଆ ମାଟିରେ ଖସା ଭଲ ହୁଏ । ଭୋଦେଇ ରାଶି ବାଲିଆ, ଗୁଡ଼ା ଓ ଢ଼ିପା ଜମିରେ ବୁଣାଯାଏ ।

ଭୋଦେଇ ରାଶି ଗୃଷ—ଜ୍ୟେଷ୍ଠ ମାସରେ ବୁଣିବା ଭଲ । ବିଳମ୍ବରେ ବୁଣିଲେ ଗଛ ବେଶୀ ବଢ଼େ ନାହିଁ, ଊଣା ଫଳ ଧରେ । ଆମଦାନୀ କମିଯାଏ । ଖରିଫିଆ ଗୃଷ କର ମାଟି ଗୁଣ୍ଡ କରାଯାଏ । ଫଳରେ କ୍ଷେତ ନିର୍ମଳ ରହେ । ଗଞ୍ଜାମ ଜିଲ୍ଲାରେ ଗୋବୁ, ଛେଳି ଓ ମେଣ୍ଢା, ପକାଇ କୁଆଁର କରଥାନ୍ତି ।

ମାଘୀ ରାଶି—ଭାଦ୍ରବ ମାସ ମେଘ ଛାଡ଼ି ଆସିଲେ ଜମି ଚାଷ ଆରମ୍ଭ ହୁଏ । ଗୁଣ୍ଡଚାଷ ହେଲେ ରାଶି ବୁଣିବା ସୁବିଧା ହୁଏ ।

ଖରିଫିଆ ରାଶି—ମାଘ ମାସରେ ଆଳୁ ଫଳିବା ପରେ ଜମି ଓଡ଼େ ଦୁଇ ଓଡ଼େ ଚଷି ମଇ ଦିଆଯାଏ । ବା ବଡ଼ ଧାନ କାଟି ଜମି ଚଷି ବଳକା ବତରରେ ବୁଣାଯାଏ ।

ବୁଣା—ଓଡ଼ିଶାରେ ଛାଟି ବୁଣିବା ପ୍ରଥା । କିନ୍ତୁ ଧାଡ଼ି ଧାଡ଼ି ହୋଇ ବୁଣିଲେ ଅଳ୍ପ ମଞ୍ଜି ଖାଏ ଓ ଅଧିକ ଆମଦାନି ହୁଏ । ଧାଡ଼ିକୁ ଧାଡ଼ି ଶୃଖଣ୍ଡେ ଫରକରେ ବୁଣିବା ଭଲ । ଛାଟି ବୁଣିଲେ ଗଛକୁ ଗଛ ଲଗାଲଗି ହୋଇ ବଢ଼ିଯାଆନ୍ତି । ଫଳରେ ଘାସ ବାଛିବାକୁ ପଡ଼ିବ ନାହିଁ । ଧାଡ଼ି ଧାଡ଼ି ବୁଣା ଫସଲରୁ ବୁଣାର ଦୁଇ ସପ୍ତାହ ପରେ ଓ ଫୁଲ ଧରି ଆସିବା ସମୟରେ ଘାସ ବାଛି ଦେବା ଭଲ ।

ଖତ ଓ ସାର—ଭଲ ଆମଦାନୀ ପାଇଁ ଏକର ପ୍ରତି ନଅ କିଲୋଗ୍ରାମ ଯବକ୍ଷାରଜାନ ଦେବା ଉଚିତ । ବାଲୁଆ

ମାଟିରେ ଏହି ଯବକ୍ଷାରଜାନ ଯୋଗାଇବା ଲଗି ଏକରପ୍ରତି ପଇଁତ୍ରିଶି କିଲୋଗ୍ରାମ୍ ଏମୋନିୟମ୍ ସଲଫେଟ୍ ଦେଲେ ଭଲ ଲଭ ହେବ ।



୨୫ —— ଦୁଇଜଣିଆ ଚକ୍ରଦ୍ୱାରା ପାଣିଦିଆଯିବା ଲଗି ଟେଣା ବେଶ ଉପଯୁକ୍ତ ।

ପାଣି ମଡ଼ା – ମାଘି ଋଣିରେ ଦୁଇଥର ପାଣି ମଡ଼ାଇଲେ ଭଲ ଆମଦାନି ମିଳେ । ଗଛ ଉଠିବାର ଦୁଇ ସପ୍ତାହ ମଧ୍ୟରେ ସାର ଦେଇ ପାଣି ମଡ଼ାଇବ । ଫୁଲ ଧରିଆସିବା ବେଳକୁ ଆଉଥରେ ପାଣି ମଡ଼ାଇ ଦେବା ଭଲ ।

ଫସଲ କଟା – ତ୍ରିଶ ଦିନରେ ଫୁଲ ଆସେ । ଭାଦ୍ରବ ମାସରେ ଛୁଇଁ ପାକଳ ହୋଇଯାଏ । ଗଛମୂଳରୁ କାଟି କ୍ଷେତ

ମୁଣ୍ଡରେ ଖଳାକର ଶୁଖାଯାଏ । ସାଧାରଣତଃ ଠେଙ୍ଗାରେ ପେଟି ଏହାକୁ ଅମଳ କରାଯାଏ ।

ମାଘି ରାଶି—ପୌଷ ମାସ ବେଲକୁ ଗଛରେ ଫୁଲ ଫଳ ଆସିଯାଏ । ମାଘ ମାସରେ କଟାଯାଏ । ଏହାକୁ ଠେଙ୍ଗାରେ ପିଟି ବା ବଳଦ ମଡ଼େଇ ଅମଳ କରାଯାଏ ।

ରାଶି କଟାଯାଇ ଛୋଟ ଛୋଟ ବିଡ଼ା ବନ୍ଧାଯାଇ ଗଦେଇ ଦିଆଯାଏ । ବିଡ଼ାକୁ ଖରାରେ ଶୁଖାଇ ଦେଲେ ଗଛର ଫଳ ଗୁଡ଼ାକ ଫାଟିଯାଏ । ଗଛବିଡ଼ାକୁ ଝାଡ଼ିଦେଲେ ରାଶ ବାହାର ପଡ଼େ ।

ଆମଦାନୀ—କେବଳ ରାଶି ଗଛରୁ ଏକର ପ୍ରତି ତିନିଶହ ପଚାଶରୁ ଚାରିଶହ କିଲୋଗ୍ରାମ ରାଶି ମିଳେ । କିନ୍ତୁ ମିଶାମିଶି ଫସଲରୁ ଶହେରୁ ଶହେ ପଚାଶ କି. ଗ୍ରା. ରାଶି ମିଳିଥାଏ ।

ତେଲ—ରାଶି ଗଛରୁ ଶତକଡ଼ା ପଚାଶ ଭାଗ ତେଲ ମିଳେ । ରାଶି ପିଡ଼ଆ ବା ସାର ଗୋ ଖାଦ୍ୟ ପାଇଁ ଭଲ । କେତେକ ଅଞ୍ଚଳରେ ରାଶି ତେଲକୁ ବିଶେଷଭାବରେ ବ୍ୟବହାର କରାଯାଏ । ଗାଁ ଗହଳରେ ଅଧିକାଂଶ ଲୋକ ନଡ଼ିଆ ତେଲ ନ ଲଗାଇ ରାଶି ତେଲ ଲଗାନ୍ତି । କାରଣ ଏହି ତେଲ ଲଗାଇଲେ ମୁଣ୍ଡ ଥଣ୍ଡା ରହେ ।

ଗଦାଧର କହିଲେ, ରାଶି ଚାଷ ବିଷୟରେ ଅନେକ ଜାଣିଲ ଏଥର ମୁଁ ସୋରିଷ ବିଷୟରେ କିଛି କହୁଛି ।

## ସୋରିଷ ଚାଷ

ଆମ ଓଡ଼ିଶାରେ ଛୟାଅଶୀ ହଜାର ଏକର ଜମିରେ ସୋରିଷ ଚାଷ କରାଯାଏ । ଆମ ରାଜ୍ୟରେ ଚାଷ ହେଉଥିବା ତୈଳବୀଜ ଫସଲଗୁଡ଼ିକ ମଧ୍ୟରେ ରାଶି ପଛକୁ ସୋରିଷର ସ୍ଥାନ ଦ୍ୱିତୀୟ ।

ଅନ୍ୟାନ୍ୟ ରାଜ୍ୟରେ ସୋରିଷ ବିଶେଷ ପରିମାଣରେ ଏକ ମିଶ୍ରିତ ଫସଲ ରୂପେ ଚାଷ କରାଯାଇଥାଏ । ମାତ୍ର ଆମ

ରାଜ୍ୟରେ ଠେଙ୍ଗ ଓ ମାଲ ଜମିରେ ଧାନ କଟା ହେଲା ପରେ ଯୋଉଷ କେବଳ ଗୋଟିକିଆ ଫସଲ ରୂପେ ବୁଣାଯାଏ ।

ମିଶ୍ରିତ ଫସଲ ହିସାବରେ ବୁଣା ହୋଇଥିଲେ ଅନ୍ୟ ଫସଲକୁ ଦିଆଯାଉଥିବା ସାରରୁ ଯୋଉଷ ମଧ୍ୟ ସାର ପାଇ-ଥାନ୍ତା । ଖାଲି ଯୋଉଷ ବୁଣିଲେ ତା ପାଇଁ ଏକର ପ୍ରତି ୨୦ କିଲୋଗ୍ରାମ ଯବକ୍ଷାରଯାନ ଦେଲେ ଲାଭଜନକ ଫସଲ ହେବ ।

ଭାରତ ବର୍ଷରେ ଯୋଉଷ ଅତି ପୁରୁଣା ଗୃଷ । ରାଇ ଯୋଉଷ ଦେଖିବାକୁ ହଳଦିଆ ରଙ୍ଗ । ଏହା ଓଡ଼ିଶାରେ ଚାଷ କରାଯାଏ ।

ଗବେଷଣା ଫଳରେ ଚାଷ କରାଯାଉଥିବା ଯୋଉଷରୁ ଉନ୍ନତ ଧରଣର ଯୋଉଷ ବଛା ଯାଇଛି । ଏହି ଯୋଉଷ ଚାଷ ଯୋଉଷଠାରୁ ଅଧିକ ଆମଦାନୀ ହୋଇଥାଏ ।

ମାଟି—ସୋରିଷ ଚାଷ ପାଇଁ ବଲୁଆ ମାଟି ଭଲ । ଏହା ବ୍ୟତୀତ ଲାଲ, ଦୋରସା, ମଟାଲ, ଓ ପଟୁମଡ଼ା ମାଟିରେ ମଧ୍ୟ ଚାଷ କରାଯାଏ । ମଟାଲ, ନଦୀକୂଳ ପଟାମଡ଼ା ଜମି, ଅଟାଲ



ଜମିରେ ଗଛ ବଢ଼େ ଓ ଅଧିକ ଆମଦାନୀ ହଏ । କଟକ ଜିଲ୍ଲାରେ ବଢ଼ିରେ ଧୋଇଯାଇଥିବା ଲଘୁ ଜମିରେ ମଧ୍ୟ ସୋରିଷ ଚାଷ କରାଯାଏ ।

ବୁଣା ସମୟ୍ଯ ସୋରିଷ ଶୀତକାଳୀନ ଫସଲ । ଏହି ଗଛରେ ମାର୍ଗଶୀର ମାସକୁ ଫୁଲ ଫୁଟେ । ମାର୍ଗଶୀର ମାସରେ ଲକ୍ଷ୍ମୀପୂଜା ହୁଏ । ଏହି ଦିନରେ ସୋରିଷ ଫୁଲ ପୂଜା କରା-ଯାଏ । ଦଶହରା ବେଳକୁ ସୋରିଷ ବୁଣାଯାଏ । କୋରାପୁଟ, କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାର ମାଳଅଞ୍ଚଳରେ ଭାଦ୍ରବ ମାସରେ ବୁଣାଯାଏ ।

ସୋରିଷ ଗଛକୁ ଲଙ୍ଗଳ ପିଆରରେ ଧାଡ଼ି ଧାଡ଼ି ବୁଣିବା ଭଲ । ପ୍ରାଚୀନ କାଳରୁ ପ୍ରବାଦ ରହିଛି ।

"ଘନ ସୋରିଷ ପାତଳ ରାଇ
ଲଗାଇ ଲଗାଇ କପାସ ରୋଇ ।"

ଏହାର ଅର୍ଥ ସୋରିଷ ଘନ ବୁଣିବ ଏବଂ ରାଇ ପାତଳ ବୁଣିବ ।

ଖତ ଓ ସାର—ଏକର ପ୍ରତି ପଚିଶ କିଲୋ ସୁପର ଫସଫେଟ ଏବଂ ପଚିଶ କିଲୋ ଆମୋନିୟମ ସଲଫେଟ୍

ଦେଲେ ଫସଲ ଭଲ ହୁଏ । ଫସଫେଟ୍ ସାର ସିଆରରେ ମଞ୍ଜି ବୁଣିବା ବେଳେ ଦେବ ।

ଆମୋନିୟମ ସଲଫେଟ୍ ଗଛ ଉଠି କୁଆଁ ମେଲିବା ବେଳେ ବାଞ୍ଛି ଦେଇ ପାଣି ମଡ଼ାଇ ଦେବ ଫୁଲ ଆସିବା ପୂର୍ବରୁ ବା ଛୁଇଁ ଧରିବାବେଳେ ଆଉ ଥରେ ପାଣିମଡ଼ାଇ ଦେବ ।



ଚିତ୍ର —ସୋରିଷ ଛୁଇଁ ଫାଟିବା ବେଳେ ମଞ୍ଜି ବହୁ ଦୂରକୁ ଛିଟାଡ଼ି ହୋଇପଡ଼େ ।



ଫସଲ କଟା ସମୟ—ଡିସେମ୍ବର ମାସରେ ସୋରିଷ ଗଛକୁ ଉପୁଡ଼ାଯାଏ । ଛୁଇଁ ପାଚିଲା ହୋଇ ଦର ଶୁଖିଲା ବେଳେ ସୋରିଷ ଗଛ କାଟିବା ଭଲ ସମୟ । ଉପୁଡ଼େଇବା

ପରେ ଏହାକୁ ଖଳାରେ ଶୁଖାଯାଏ । ଠେଙ୍ଗାରେ ବାଡ଼େଇ ଅମଳ କରାଯାଏ ।

ଆମଦାନୀ—ଭଲ ଆମଦାନୀ ପାଇଁ ଏକର ପ୍ରତି ନଅ କିଲୋଗ୍ରାମ୍ ଯବକ୍ଷାରଜାନ ଦେବା ଉଚିତ । ବାଲୁଆ ମାଟିରେ ଏହି ଯବକ୍ଷାରଜାନ ଯୋଗାଇବା ଲାଗି ଏକର ପ୍ରତି ପଇଁତାଳିଶ କିଲୋଗ୍ରାମ ଏମୋନିୟମ୍ ସଲଫେଟ୍ ଦେଲେ ଭଲ ।

ସୋରିଷ ତେଲକୁ ରନ୍ଧାରନ୍ଧିରେ ବ୍ୟବହାର କରାଯାଏ । ହଳଦିଆ ରଙ୍ଗର ସୋରିଷ ତେଲ ସବୁଠାରୁ ଉତ୍କୃଷ୍ଟ ।

## ପେଷି ଚାଷ

ଆମ ରାଜ୍ୟରେ ପ୍ରାୟ ଛବିଶି ହଜାର ଏକର ଜମିରେ ପେଷି ଚାଷ କରାଯାଇଥାଏ । ବଲାଙ୍ଗୀର, କଳାହାଣ୍ଡି, ବୌଦ୍ଧ, ମୟୂରଭଞ୍ଜ ଏବଂ କଟକ ଜିଲ୍ଲାର ପଟୁମଡ଼ା ଅଞ୍ଚଳରେ ପେଷି ଚାଷ କରାଯାଏ । ଏହା ମଧ୍ୟରୁ ମୟୂରଭଞ୍ଜରେ ଚାଷ ହେଉଥିବା ପେଷି ସବୁଠାରୁ ଭଲ ।

ପେଷି ଗଛ ଷାଠିଏରୁ ନବେ ସେଣ୍ଟି ମିଟର ଉଚ୍ଚରେ ବଢ଼େ । ଏହାର ଚେର ଅଧିକ ଗଭୀର ପର୍ଯ୍ୟନ୍ତ ଯାଏନାହିଁ । ତୈଳମଞ୍ଜି ପାଇଁ ପେଷି ଗଛ ଶାଖା ମେଲାଇ ଝଙ୍କା ଧରି ବଢ଼େ । ଏହି ଗଛର ପତ୍ର ଛୋଟ । ଏହାର ଫୁଲ ନୀଳ ବା ଧଳା ରଙ୍ଗ । ଏହାର ଫଳରେ ବହୁତ ମଞ୍ଜି ଥାଏ ।

ମାଟି —ପଟୁମାଟିରେ ପେଷୀ ଚାଷ କରାଯାଏ । ଏହା ମାଟିକୁ ନବଳୁଆ କରିପକାଏ । ତେଣୁ ଦୋରସା ଓ ବାଲିଆ ମାଟିରେ ଚାଷ କରାଯାଏ ।



ଋତୁ ପେଷି ଶୀତଦିନିଆ ଫସଲ । ବର୍ଷା ସହିପାରେ ନାହିଁ କି ଉଷ୍ମ ଜଳବାୟୁରେ ବଢ଼େ ନାହିଁ । ବର୍ଷା କମିଗଲେ

## —ପଇଁଚରଣି—

ପେଷି ମଞ୍ଜି ବୁଣା ଯାଏ । ତିନ ଗ୍ଲରଓଡ଼ ଜମି ଚଷି ମଞ୍ଜି ବୁଣିବା ଭଲ । ମାଟିଗୁଣ୍ଡ ହେବା ଦରକାର । ଆବୁଡ଼ା ଖାବୁଡ଼ା ମାଟିରେ ପେଷିଗଛ ଭଲ ହୁଏ ନାହିଁ । ଫସଲ ଭଲ ଉଧାଏ ନାହିଁ ।

ବୁଣା ସମୟ ଶୀତଦିନରେ ପେଷି ଗଛକୁ ଛାଟି ବୁଣାଯାଏ । ପ୍ରତି ଧାଡ଼ିରେ ଗଛକୁ ଦଶ ସେଣ୍ଟିମିଟର ବ୍ୟବଧାନ ରହିବା ଭଲ । ବୁଣିସାରି ମଇ ଦିଆଯାଏ । ଗଛ ଉଠିବା ପରେ ଡଉରାଷା ଓ ଡଣ୍ଡିଆ ଚଲାଇ ମାଟି ଖୁଦେଇ ଦିଆଯାଏ ।

ପେଷି ସ୍ୱତନ୍ତ୍ର ଫସଲ ରୂପେ କମ୍ବା ଗହମ, ବୁଟ ଓ କଆଁର ସହିତ ମିଶି ବୁଣାଯାଏ । ଓଡ଼ିଶାର କଟକ ଜିଲ୍ଲାରେ ଅପାଣିଆ ଗହମ, କୋଳଥ ସହିତ, ନୟାଗଡ଼ ଅଞ୍ଚଳରେ ଗହମ ଓ ମୁଗ ସହିତ ମିଶି ବୁଣାଯାଏ ।

ପ୍ରଥମ ବର୍ଷ— ବର୍ଷାଦିନରେ ଧାନ
ଶୀତ ଦିନରେ ଧାନ
ଉପାଡ଼ି ପେଷି

ଦ୍ୱିତୀୟ ବର୍ଷ—ଗହମ, କୁଆଁର ବା ବୁଟ ।

ଅମଳ ସମୟ—ପେଷି ଗଛ ଦେଢ଼ ହାତରୁ ଦ୍ୱ ହାତ ଉଚ୍ଚ ହୁଏ । ପୌଷ ମାସରେ ନୀଳବର୍ଣ୍ଣର ଫୁଲ ଧରେ ।




ବିଭିନ୍ନ ଦୂରତା ଦେଇ ବୃଷ କରାଯାଇଥିବା ପେଷି ଗଛ

ମାଘ ମାସ ଶେଷ ଆଡ଼କୁ ଖୋସା ପାଚ ପାଚ ଶୁଖିଯାଏ । ଗଛ କଟାଯାଇ ଗୋଛା ବାନ୍ଧି ଖଳାକୁ ଅଣାଯାଏ । ଖଳାରେ

ଶୁଖାଇ ଠେଙ୍ଗାରେ ବାଡ଼େଇ ବା ବେଙ୍ଗଲା ପକାଇ ଅମଳ କରାଯାଏ ।

ଖୁବ୍ ଭଲ ଧରଣର ପେଷି ଆମଦାନି କରିବାକୁ ହେଲେ ଯବକ୍ଷାରଜାନ ଫସ୍ ଫରସ୍ ଉଭୟ ଉଦ୍ଭିଦ ଖାଦ୍ୟ ମାଟିରେ ଦେବାକୁ ପଡ଼େ ।

ପେଷି ଗଛରୁ ଆମେ ତେଲ ପାଉଁ । ଏହି ତେଲ ଶିଳ୍ପରେ ବ୍ୟବହାର ହୁଏ । ଯଥା – ସାବୁନ, ରଙ୍ଗ ଓ ବାର୍ଣ୍ଣିଶ ଇତ୍ୟାଦି ପେଷିତେଲରେ ହିଁ ତିଆରି ହୁଏ । ଏହି ତେଲ ଶୀଘ୍ର ଶୁଖିଯାଇ ଚକ୍ ଚକ୍ ଦିଶେ ।

## ଜଡ଼ା ଗଛ

ଗଦାଧର ବାବୁ ଶେଷରେ ଜଡ଼ା ଗଛ ବିଷୟରେ କିଛି କହିଲେ । ଜଡ଼ା ଗଛ ଗଛରୁ ପାଞ୍ଚମିଟର ଉଚ୍ଚ ହୁଏ । ଜଡ଼ା କୁକୁର ଦେହର ଟିଙ୍କ ଭଳି ଦେଖାଯାଏ । କେତେକ ଜଡ଼ା ଶାଖା ପ୍ରଶାଖା ମେଲି ବଢ଼େ । ଆଉ କେତେକ ସଳଖ ଭାବରେ ବଢ଼ିଯାଆନ୍ତି ।

— ଅଠତରଶି —

ଜଡ଼ା ଗଛ ଦେହର ଗଣ୍ଠି, ଶାଖା ଓ ପତ୍ରରୁ ମହମ ଭାହାର ଚକଚକଣ ଧଳା ଦେଖାଯାଏ । ଜଡ଼ା ଗଛର ପତ୍ର କଅଁଳିଲ୍ ବେଳକୁ ଲୋହିତ ବର୍ଣ୍ଣ ଦେଖାଯାଏ । ପରେ ଏହା ଶାଗୁଆ ରଙ୍ଗ ହୋଇଯାଏ । ଅଣ୍ଡିରା ଫୁଲ କେସରଦଣ୍ଡର ତଳେ ଏବଂ ମାଇଫୁଲ ଅଗ ଆଡ଼କୁ ଥାଏ ।



ଜଡ଼ା ଗଛ ଶାଖା ପ୍ରଶାଖା ମେଲି ବଢ଼େ । ଅଙ୍କିରୁ ଶହେ ଦିନ ମଧ୍ୟରେ ଜଡ଼ା ତୋଳାଯାଏ ।

ଚୃଷ—ଜମି ଦୁଇ ତିନି ଓଡ଼ ଚୃଷ କରାଯାଏ । ଜଡ଼ା ମାଟି ବାଛେ ନାହିଁ । ଯେ କୌଣସି ମାଟିରେ ବଢ଼େ । କିନ୍ତୁ ପଟୁ ମଡ଼ା ମାଟିରେ ଏହି ଗଛରେ ଭଲ ଫସଲ ମିଳେ । ଗୁଣ୍ଡ ମାଟିରେ ଜଡ଼ା ବୁଣିବା ଭଲ ।

ଜଡ଼ା ମଞ୍ଜି ଖୋଲପା ଅତି ଟାଣ । ଗଛ ଉଠିବା ଲାଗି ମାଟିରେ ବତର ରହିଥିବା ଦରକାର । ତେଣୁ ରବି ଫସଲ ଲାଗି ଗହିରିଆ ଚୃଷ ଭଲ ।




[ ଦେଶୀ ଲଙ୍ଗଳ ଅପେକ୍ଷା ଲୁହା ଲଙ୍ଗଳରେ ଚୃଷ କରିବା ଭଲ ।

ଓଡ଼ିଶାରେ ଜଡ଼ା, ବାଡ଼ିରେ, ପୋଖରୀ ହୁଡ଼ାରେ ବନ୍ଧ ଓ କଣ୍ଟା ହୁଡ଼ାରେ ବହୁ ବର୍ଷ ଗଛ ବଞ୍ଚିବା ପାଇଁ ଲଗାଯାଇଥାଏ ।

ବୁଣା ସମୟ—ଜଡ଼ାକୁ ସାଧାରଣତଃ ଛାଣ୍ଟି ବୁଣାଯାଏ । ମାତ୍ର ଧାଡ଼ି କରି ବୁଣିବା ଭଲ । ଲଙ୍ଗଳରେ ସିଆର କରି ଦୁଇ ଦୁଇଟି ମଞ୍ଜି ବୁଣିବା ଭଲ । ଧାଡ଼ିକୁ ଧାଡ଼ି ଦୁଇ ହାତ ଛଡ଼ାରେ ଗଛ ରହିବା ଭଲ । ଏହି ଫସଲକୁ ଦଶହରା ସମୟରେ ବୁଣିବା ଭଲ ।



ନଦୀ ବଢ଼ି ଛାଡ଼ିଗଲେ ନଦୀପଠା, କଣ୍ଡିଆ, ଓ ବଢ଼ି ମାଡ଼ି ପଟୁ ପଡ଼ିଥିବା ଜମିରେ ବୁଣାଯିବା ଭଲ । ଏକର ପ୍ରତି ପନ୍ଦରରୁ କୋଡ଼ିଏ କିଲୋଗ୍ରାମ ମଞ୍ଜି ବୁଣିବା ଭଲ । ଧାଡ଼ି ଧାଡ଼ି କରି ଏବଂ ଦୁଇ ଦୁଇଟି ମଞ୍ଜି ପକାଇ ବୁଣାଗଲେ ପାଞ୍ଚରୁ ଦଶ କିଲୋଗ୍ରାମ ମଞ୍ଜି ଲାଗେ ।

ଗଛ ବହଳିଆ ଉଠିଲେ ମଝିରୁ ମଝିରୁ ଉପାଡ଼ି ପାତଳ କରିବା ଭଲ । ପାଣି ମଡ଼ାଇବା ସୁବିଧା ଥିଲେ ଫୁଲ ଆସିବା ପୂର୍ବରୁ ଦୁଇଥର ପାଣି ମଡ଼ାଇବା ଭଲ ।

ଖତ ଓ ସାର — ପାଣି ମଡ଼ାଇବା ସୁବିଧା ଥିଲେ ଏକର ପ୍ରତି ପଚାଶ କିଲୋଗ୍ରାମ ଆମୋନିୟମ୍ ସଲଫେଟ ଦେବା ଭଲ । ଏହି ସାର ପ୍ରୟୋଗରେ ହାରାହାରି ଷାଠିଏ କିଲୋଗ୍ରାମ ଅଧିକ ଜଡ଼ା ଆମଦାନୀ ହୁଏ । ନିରସା ମାଟିରେ ଛେଳି ଓ ମେଣ୍ଢା ପକାଇ କୁଆଁର କରାଯାଏ ।

ଜଡ଼ାତୋଳା ସମୟ — ଜଡ଼ାଫଳ ଏକ ସମୟରେ ପାକଳ ହୁଏ ନାହିଁ । ବୁଣା ଯିବାର ଚାରିମାସ ପରେ ପାକଳ ହେବାକୁ ଆରମ୍ଭ ହୁଏ । କିନ୍ତୁ ଦର ପାକଳିଆ ମଞ୍ଜିରୁ ଭଲ ତେଲ ବାହାରେ ନାହିଁ । ସ୍ପୋଟକଗୁଡ଼ିକୁ ତୋଳି ଖରାରେ ଶୁଖାଯାଏ । ଏହା ଶୁଖି ଝଣ ଝଣ ହେଲେ ଖୋଳ ଫାଟି ଦୁଇଫାଳ ହୋଇଯାଏ । ତେଣୁ ମଞ୍ଜି ଅଲଗା ହୋଇ ରହିଯାଏ ।

ଜଡ଼ା ତେଲକୁ ଗାଁ ଗହଳରେ ଲୋକମାନେ ଦେହରେ ଲଗାନ୍ତି । ଗାଁ ଗହଳରେ ଜଡ଼ା ମଞ୍ଜିକୁ କାଟି ପାଣିରେ ରାନ୍ଧି

ତେଲ ବାହାର କରନ୍ତି । ରନ୍ଧା ଜଡ଼ା ତେଲ ଔଷଧରେ ମଧ୍ୟ ବ୍ୟବହାର କରାଯାଏ ।

ଗୋପାଳ କହିଲା, ଆପଣ ଏତେ କଷ୍ଟ କରି ତୈଳବୀଜ ଜାତୀୟ ଫସଲ ଉପରେ ବହୁତ କଥା କହିଲେ ସେଥିପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ମୋର କେଉଁ ଜମିରେ କି ପ୍ରକାର ଚାଷ କରିବି ଠିକ୍ କରି ଜଣାଇବ । ଏତକ କହି ଗୋପାଳ ଗଦାଧର ବାବୁଙ୍କୁ ନମସ୍କାର କରି ବିଦାୟ ନେଲା ।

